## ସନେଟ୍ (sonnet) କଣ

**ସନେଟ୍ କଣ:** ସନେଟ୍ ଏକ କଠୋର ଶୃଙ୍ଖଳାଧୀନ କବିତା ରଚନାର ଶୈଳୀ ।

**ସଂଗଠନ:** ଏଥିରେ ୧୦ ଧ୍ୱନି-ଏକକ (syllable) ବିଶିଷ୍ଟ ୧୪ଟି ଧାଡି ବା ପଙ୍କ୍ତି ରହେ । ଭାରତୀୟ ଭାଷାରେ ସନେଟ୍ ଲେଖିଲେ ପ୍ରତି ପଙ୍କ୍ତିରେ ଦଶ ଅକ୍ଷର କହିବା ଠିକ୍ ହେବ ।

**ଅକ୍ଷରକ୍ରମ:** ଏହି ଅକ୍ଷର ଗୁଡିକ ଗୋଟିଏ ଲଘୁ (unstressed or short) ପରେ ଗୋଟିଏ ଗୁରୁ (stressed or long ) ହେବା ବିଧେୟ । ଆମ ଶାସ୍ତ୍ରରେ ଏହି ୧୦ ଅକ୍ଷର ବିଶିଷ୍ଟ ଅବିକଳ ଛନ୍ଦର ନାମ ସରାବିକା ।

**ବିଷୟସଜ୍ଜା:** ସନେଟ୍ର ପ୍ରଥମ ଚତୁଷ୍ପାଦିକ (quatrain)ରେ ମୁଖ୍ୟ ବିଷୟର ଉପସ୍ଥାପନ, ଦ୍ୱିତୀୟରେ ବିଷୟର ବିସ୍ତାରଣ ଓ ତୃତୀୟରେ ବିପରୀତ ଭାବନ ରହେ । ଯୁଗ୍ମକ (couplet)ଟିରେ ସୁସ୍ପଷ୍ଟ ଉପସଂହାର ରହେ ।

**ସାବଧାନତା:** ଏହି ନିୟମଗୁଡିକ ନ ମାନି ଲେଖିଲେ ସନେଟ୍ ସନେଟ୍ ବୋଲି ଯେତେ ରଡି ଛାଡିଲେ ବି ଶାସ୍ତ୍ରାନୁସାରେ ଲେଖାଗୁଡିକ ସନେଟ୍ ହେଇ ଯାଏ ନାହି । ସ୍ମରଣୀୟ ଯେ ଦୋହା କି ରୁବାଇ ମଧ କବିତାର ଶୀର୍ଷକ ପାଖରେ ସେ ପରି ଲେଖି ଦେଲେ ହେଇ ଯାଏ ନାହିଁ । ଯିଏ ଯାହା ଲେଖିବ ତାକୁ ତା ନିୟମ ଜାଣି ସେ ପରି ଲେଖିବାକୁ ହେବ ।

**ଆନ୍ତ୍ୟମିଳନ:** ସନେଟ୍ରେ 14ଟି ପଙ୍କ୍ତିର ଆନ୍ତ୍ୟମିଳନ ଶୈଳୀ ହେଲା ABAB, CDCD, EFEF ଓ GG ଯେଉଁଥିରେ କି A, B ଆଦି ପରସ୍ପରଠୁ ଭିନ୍ନ ସମାପକ । ତେବେ ଅନ୍ୟ ଏକ ଭେଦ (variant)ରେ ABAB BCBC CDCD EE ମଧ ହୁଏ । ଏଥିରେ A B ଓ C ଇତ୍ୟାଦି ପରସ୍ପରଠୁ ଭିନ୍ନ ଶେଷାକ୍ଷର ।

**ପ୍ରକାରଭେଦ:** ସନେଟ୍ ମୁଖ୍ୟତଃ ଦୁଇ ପ୍ରକାରର: ସେକ୍ସପିରୀୟ (Shakespearean) ଓ ପେଟ୍ରାର୍କୀୟ (Petrarchan). ଏ ଯାଏ ସେକ୍ସପିରୀୟ ସନେଟ୍ ବିଷୟରେ କହିଥିଲି ।

**ପେଟ୍ରାର୍କୀୟ:** ଏହି ସନେଟ୍‌ରେ ପ୍ରଭେଦ ଏହି ଯେ ଏଥିରେ ଧାଡିଗୁଡିକୁ **3**ଟି ଚତୁଷ୍ପାଦିକ ଓ **1**ଟି ଯୁଗ୍ମକରେ ଶ୍ରେଣୀବଦ୍ଧ **(grouping)** ନ କରି ପ୍ରଥମ **8** ଧାଡିକୁ **1**ଟି ଅଷ୍ଟକ **(octave)** ଓ ପର **6** ଧାଡି ଏକତ୍ର କରି **1**ଟି ଷଷ୍ଠକ **(sestet)**ରେ ଶ୍ରେଣୀବଦ୍ଧ କରା ଯାଏ । ଏହାର ଆନ୍ତ୍ୟ ମିଳନ ବି ଭିନ୍ନ ପ୍ରକାର କରୁଛନ୍ତି । ଯଥା: **(1) ABBA ABBA CDECDE (2) ABBA ABBA CDCCDC** । ଏଥିରେ ବି ଏକା ବର୍ଣ୍ଣଶୃଙ୍ଖଳା ବାଧ୍ୟତାମୂଳକ ।

**ସରାବିକା ଛନ୍ଦ କଣ:** ଏହା ଏକ ଦଶାକ୍ଷର ବିଶିଷ୍ଟ ଅର୍ଥାତ୍ ପଙ୍କ୍ତି ଶ୍ରେଣୀୟ ବାର୍ଣ୍ଣିକ ଛନ୍ଦ । ଏଥିରେ ଲଘୁ ଓ ଗୁରୁ ମିଶି ମୋଟ **10**ଟି ବର୍ଣ୍ଣ ରହିବାର କ୍ରମ ହେଲା: **121-212-121-2** ଯେଉଁଥିରେ କି **1** ଲଘୁ ବର୍ଣ୍ଣ ଓ **2** ଗୁରୁ ବର୍ଣ୍ଣର ସୂଚକ ।

**ଲଘୁ ଓ ଗୁରୁ ବର୍ଣ୍ଣ କଣ:** ଯେଉଁ ବର୍ଣ୍ଣର ଉଚ୍ଚାରଣ ସମୟ **1** ଏକକ **(one unit)** ବା **1** ମାତ୍ରା ତାହା ଲଘୁ ବର୍ଣ୍ଣ ଓ ଯାହାର ଉଚ୍ଚାରଣ ସମୟ **2** ଏକକ ବା **2** ମାତ୍ରା ତାହା ଗୁରୁ ବର୍ଣ୍ଣ ।

**ଲଘୁ ଓ ଗୁରୁ ବର୍ଣ୍ଣ ନିର୍ଣ୍ଣୟ:** ବ୍ୟାକରଣରେ ପଢା ହେଉଛି କି ଅ, ଇ, ଉ, ଋ, ଌ - ଏହି **5**ଟି ହ୍ରସ୍ୱ ସ୍ୱର ଓ ବାକି ଆ, ଈ, ଊ, ୠ, ଏ, ଐ, ଓ,ଔ - ଏହି **8**ଟି ଦୀର୍ଘ ସ୍ୱର । ଛନ୍ଦ ଶାସ୍ତ୍ରରେ ସମସ୍ତ ଦୀର୍ଘ ସ୍ୱର ଗୁରୁ ବର୍ଣ୍ଣ । କିନ୍ତୁ ହ୍ରସ୍ୱ ସ୍ୱର ଗୁଡିକ ସାଧାରଣତଃ ଲଘୁ ହେଲେ ହେଁ ସ୍ଥଳବିଶେଷରେ ସେଗୁଡିକ ବୋଲିଲା ବେଳେ ଅଧିକ ସମୟ ନିଅନ୍ତି ବୋଲି କାବ୍ୟରେ ଗୁରୁ ବର୍ଣ୍ଣ । ଏହି ସ୍ଥିତି ଗୁଡିକ ହେଲା -

(୧) ଯେଉଁଥିରେ ଅନୁସ୍ୱାର ବା ବିସର୍ଗ ଯୋଗ ହେଇ ଥିବ ସେହି ବର୍ଣ୍ଣ ଗୁରୁ ବର୍ଣ୍ଣ

(୨) ଏକା ପାଦ ବା ଚରଣରେ ଯେଉଁ ବର୍ଣ୍ଣର ଠିକ୍ ପରେ ଯୁକ୍ତାକ୍ଷର ବା ହଳନ୍ତକ ବର୍ଣ୍ଣ ଥିବ ତାହା ମଧ୍ୟ ଗୁରୁ ବର୍ଣ୍ଣ ।

(୩) ପାଦର ଶେଷକୁ ଲଘୁ ବର୍ଣ୍ଣ ଥିଲେ ବି ତାକୁ ଗୁରୁ ବର୍ଣ୍ଣର ବୋଲି ମାନ୍ୟତା ଦିଆ ଯାଇ ପାରିବ ।

**ସ୍ମରଣୀୟ:** ବ୍ୟଞ୍ଜନ ବର୍ଣ୍ଣର ମାତ୍ରା ନ ଥାଏ ।

**ଉଦାହରଣ:**

ଶବ୍ଦ ମାତ୍ରା ବିଚାର

---- --------------

କସ - କରେ **1** ମାତ୍ରା, ସରେ **1** ମାତ୍ରା ।

କଂସ - କଂରେ **2,** ସରେ **1** ମାତ୍ରା **।**

ବଂଶୀ - ବଂରେ **2,** ଶୀରେ **2** ମାତ୍ରା **।**

ଚକ - ଚରେ **1** ଓ କରେ **1** ମାତ୍ରା **।**

ଦୁଃଖ - ଦୁଃରେ **2** ଖରେ **1** ମାତ୍ରା **।**

ଚୁପ୍ - ଚୁରେ **2** ମାତ୍ରା ପ୍‌ରେ **0** ମାତ୍ରା **।**

ଭବିଷ୍ୟତ୍ - ଭରେ **1,** ବିରେ **2,** ଷ୍ୟରେ **2,** ତ୍‌ରେ **0** ମାତ୍ରା **।**

ହଠାତ୍ - ହରେ **1,** ଠାରେ **2,** ତ୍‌ରେ **0** ମାତ୍ରା **।**

**ମାତ୍ରିକ ଓ ବାର୍ଣ୍ଣିକ ଛନ୍ଦ କଣ:** ବୈଦିକ ଛନ୍ଦଠୁ ଭିନ୍ନ ଆମ ଛନ୍ଦ ଶାସ୍ତ୍ରରେ ଦୁଇ ପ୍ରକାର ଲୌକିକ ଛନ୍ଦ ଅଛି - ମାତ୍ରିକ ଛନ୍ଦ ଓ ବାର୍ଣ୍ଣିକ ଛନ୍ଦ **।** ମାତ୍ରିକ ଛନ୍ଦରେ ମାତ୍ରା ଗଣନା ହୁଏ **।** ବାର୍ଣ୍ଣିକ ଛନ୍ଦରେ ପ୍ରତି ଧାଡିରେ ଯେଉଁଠି ଲଘୁ ବା ଗୁରୁ ଯେଉଁ ବର୍ଣ୍ଣର ବିଧାନ ଥିବ ସେଠି ସେହି ବର୍ଣ୍ଣ ଲେଖିବାକୁ ପଡିବ ଅର୍ଥାତ୍ ପ୍ରତି ଧାଡି ବା ପାଦରେ ଲଘୁଗୁରୁ ବର୍ଣ୍ଣକ୍ରମ ସମାନ ରହିବ **।**

**ସରାବିକା କାହିଁକି:** ବାର୍ଣ୍ଣିକ ଛନ୍ଦ କଠୋର କିନ୍ତୁ ସନେଟ୍ କ୍ଷେତ୍ରରେ ସେହି ବାର୍ଣ୍ଣିକ ଛନ୍ଦ ବିଶେଷ "ସରାବିକା" ହିଁ ପ୍ରୟୋଗ୍ୟ **।** କାରଣ ହେଲା ଇଂରାଜୀରେ ସନେଟ୍ ଏହି କଠୋର ବର୍ଣ୍ଣକ୍ରମରେ ହିଁ ଲେଖା ହୁଏ **।**

**ଓଡିଆରେ ସନେଟ୍:** ଏବେ ଓଡିଆ ଭାଷାରେ ଏହି ବାର୍ଣ୍ଣିକ ଛନ୍ଦ ସରାବିକାରେ ରଚିତ ସେକ୍ସ୍‌ପିରୀୟ ସନେଟ୍‌ର *ଉଦାହରଣ* ନିଅନ୍ତୁ **।**

**ଉଦାହରଣ:**

**(୧)**

**====================**

ଛନ୍ଦ: ସରାବିକା

ଛନ୍ଦର ଲକ୍ଷଣ: **121-212-121-2**

**(**ଏଥିରେ **1=** ଲଘୁବର୍ଣ୍ଣ ଓ **2=** ଗୁରୁବର୍ଣ୍ଣ**;)**

**====================**

କବିତା: **ସନେଟ ଲେଖିବା ବିଧାନରେ**

ସନେଟ ଚୌଦପାଦ ଗୀତିକା **(A =** କା**)**
ପୁନଶ୍ଚ ପାଦଟେ ଦଶାକ୍ଷରେ **(B=** ରେ**)**
କ୍ରମାନ୍ୱୟେ ଥିବାର ଖଞ୍ଜିକା **(A =** କା**)**
ସୁଦୀର୍ଘଟେ ଅଦୀର୍ଘଟେ ପରେ **। (B=** ରେ**)**

**ସୁଦୀର୍ଘ= ଗୁରୁବର୍ଣ୍ଣ; ଅଦୀର୍ଘଟେ= ଲଘୁବର୍ଣ୍ଣ;**

**ପ୍ରମେୟ ଆଦ୍ୟରେ ଚତୁଷ୍ପଦେ (C= ଦେ)**
**ବିଶେଷ ପାଞ୍ଚ-ଆଠ ପଙ୍କ୍ତିକେ (D= କେ)**
**ନଠାରୁ ବାର ବାମ ଆସ୍ପଦେ (C= ଦେ)**
**ଦି ଧାଡିରେ ସମାପ୍ତି ଯୁଗ୍ମକେ । (D= କେ)**

**ପ୍ରମେୟ= ବକ୍ତବ୍ୟ, theorem; ଚତୁଷ୍ପଦ= quatrain; ବିଶେଷ= ବିସ୍ତାର, expansion; ବାମ= ବିପରୀତ ଭାବନ ବା ତର୍କ; ଆସ୍ପଦ= ବ୍ୟାପାର, ବ୍ୟବହାର, affair; ଯୁଗ୍ମକ= couplet;**

**ଅନେକ ଚୌଦ ଧାଡି ଲେଖିଲେ (E= ଲେ)**
**ମଣନ୍ତି ତା ସନେଟ ଗୋଟିଏ । (F= ଏ)**
**ନମାନି ତା ବିଧାନ ଯା କଲେ (E= ଲେ)**
**ସନେଟ ତାକୁ ମାନିବେ କିଏ । (F= ଏ)**

**ସନେଟ ଲେଖିବାକୁ ଆଗ୍ରହୀ ! (G= ହୀ)**
**ବିଧାନ ମାନ ଦେଖୁ ଏ ସହୀ । (G= ହୀ)**
**(L. Kabi)**

**(୨)**
**====================**
**ଛନ୍ଦ: ସରାବିକା**
**ଛନ୍ଦର ଲକ୍ଷଣ: 121-212-121-2**
**(ଏଥିରେ 1= ଲଘୁବର୍ଣ୍ଣ ଓ 2= ଗୁରୁବର୍ଣ୍ଣ;)**
**====================**
**କବିତା: ମନୁଷ୍ୟଜନ୍ମ**

**ମନୁଷ୍ୟଜନ୍ମ ସାର ଶାଶ୍ୱତେ**
**ବିବେକ ବୁଦ୍ଧି ଯୁକ୍ତ ଜୀବ ସେ ।**
**ଶରୀର ଦକ୍ଷ ତାର ସଂସୃତେ**
**ରସା ତଳେ ସମସ୍ତ ତା ବଶେ । 1**

**ଶାଶ୍ୱତୀ= ପୃଥିବୀ; ସଂସୃତି= ସଂସାର;**

**ମନୁଷ୍ୟ ଧର୍ମ ନୀତି ଆଦରେ,**

ପଢେ ପଢାଇ ଥାଇ ଶାବକେ;
ସିଏ ଜିଣେ ସଦା ଚରାଚରେ,
ଅନନ୍ୟ ଜୀବ ଏହି ଗୋଲକେ **। 2**

ଗୋଲକ= ପୃଥ୍ଵୀ;

ଶଠତ୍ଵ ଆଚରେ ବି ମାନବ,
ଅସତ୍ୟ ଭାଷଣେ ଜିଣେ ଧରା,
ଫଳେ ସ୍ଵତଃ ହୁଏ ଅସମ୍ଭବ
ମମତ୍ଵପୂରିତା ବସୁନ୍ଧରା **। 3**

ମନୁଷ୍ୟ ଜନ୍ମରେ ମହାନତା
ମିଳେ ସଦୈବ ମାନି ଶୀଳତା **।**
**(L. Kabi)**
**L. Kabi 22-11-07-22-48**